# ଅପ୍ରିୟ ଶତକ

## ଡକ୍ଟର ଶ୍ରୀଚରଣ ମହାନ୍ତି

ପ୍ରଥମ ସଂସ୍କରଣ-୨୦୧୩

*ମୁଦ୍ରଣ*
ମ୍ୟାଗ୍ନମ ପ୍ରିଣ୍ଟର୍ସ
ଆର୍‌ଟି-୨୮
ରସୁଲଗଡ଼ ଶିଳ୍ପାଞ୍ଚଳ
ଭୁବନେଶ୍ୱର-୭୫୧୦୧୦

*ପ୍ରକାଶକ*
ଡକ୍ଟର ଶ୍ରୀଚରଣ ମହାନ୍ତି
୮୮୬,ଚଣ୍ଡିମାତା କଲୋନୀ
ପୋ:ରସୁଲଗଡ଼,ଭୁବନେଶ୍ୱର-୧୦
୦୯୪୩୭୩ ୫୧୯୪୨

ମୂଲ୍ୟ:ଟ ୯୦.୦୦
(ନବେ ଟଙ୍କା ମାତ୍ର)

# APRIYA SATAK

## Dr. Sricharan Mohanty

First Edition-2013

***Printer:***
MAGNUM PRINTERS
RT-28, Rasulgarh Industrial
Estate, Bhubaneswar-10
Ph.: 2549307

***Publisher:***
Dr.Sricharan Mohanty
886 Chandimata Colony
Rasulgarh, Bhubaneswar-10
Mob.: 094373 51942

**Price-Rs-90.00**
(Rupees Ninety Only)

# ଅପ୍ରିୟ ଶତକର ପ୍ରିୟକଥା

ଛାତ୍ର ଜୀବନରେ ସପ୍ତମ ଶ୍ରେଣୀରୁ ଆରମ୍ଭ କରି ଅବସର ଜୀବନରେ ଆଜି ପର୍ଯ୍ୟନ୍ତ କୌଣସି ଘଟଣା ମନକୁ ଛୁଇଁଲେ ସହସା ହାତପାଆନ୍ତାରେ ଥିବା କାଗଜ କଲମ ବା ପେନ୍‌ସିଲରେ କିଛି ଲେଖିପକାଏ । ସେ ଛୋଟ କାଗଜ ଟୁକୁରା କୌଣସି ବହି ବା ଖାତା ଭିତରେ ରହିଯାଏ । ସୁବିଧା ହେଲେ କୌଣସି ଖାତାକୁ ଉଠାଏ,ନହେଲେ ତା ଭିତରେ ସେ ସେମିତି ଲୁଚିଯାଏ ।

ମାର୍କାମରା କବିଙ୍କ ଭଳି ଛୋଟ ହେଉ ବା ବଡ଼ ହେଉ ମୋର କୌଣସି ଗୀତ,ଏକପଦୀ ବା କବିତା ଭଲ ଖାତାରେ ଲେଖା ହୋଇ ଆରମ୍ଭ ହୋଇନି । ଆଖି ଆଗରେ ଦେଖୁଥିବା କୌଣସି ଘଟଣା,ସହପାଠୀ,ବନ୍ଧୁ, ଶିକ୍ଷକ, ଅଧ୍ୟାପକ,ସହକର୍ମୀ ମାନଙ୍କୁ ନେଇ ଏ ସବୁ ପ୍ରିୟ କଥା ଲେଖା ହୋଇଥିଲା । ଯାହାପାଇଁ ଲେଖା ହୁଏ ତାଙ୍କ ପାଇଁ ଅପ୍ରିୟ ହେଲେ ବି ଶୁଣୁଥିବା ପଢୁଥିବା ବ୍ୟକ୍ତିଙ୍କ ପାଇଁ ପ୍ରିୟ । କୌଣସି ଲେଖା କାଳ୍ପନିକ ନୁହେଁ । ଲେଖାର ଚରିତ୍ର ବି କେବେ କେବେ ନିଜ ସଂପର୍କର ଏ ଲେଖା ଦେଖିଛନ୍ତି । ଗଦ୍ୟରଚନା ପାଇଁ ବିଧାନ ଅଲଗା । ତଥାପି ଅଧିକାଂଶ ଲେଖାର ନକ୍‌ସା ପ୍ରାୟ ଖୋଲା କାଗଜକୁ ।

ଏ ଧରଣର ସବୁଲେଖା ଛୋଟ ନୁହେଁ ଦୀର୍ଘ ଲେଖା ବି ଅଛି । ଏହି ଲେଖା ମଧ୍ୟରୁ ଅନେକ ଲେଖା ମଚ୍ଛିନ୍ଦ୍ରନାଥ ଅଥବା ଚନଭାଇ ନାମରେ 'ନୀଳାଚଳ ମାଧୁରୀ', ତଥା ଶାନ୍ତିନିକେତନର ହାତଲେଖା ପତ୍ରିକା 'ଉତ୍କଳ ଭାରତୀ', କଟକରୁ ପ୍ରକାଶିତ 'ତଗର', ରାଉରକେଲାରୁ ପ୍ରକାଶିତ 'ପଶ୍ଚିମାଞ୍ଚଳ' ସହିତ ଅନ୍ୟ କେତେକ ପତ୍ରିକାରେ ପ୍ରକାଶିତ ହୋଇଛି ।

ଅବସର ଗ୍ରହଣ ପରେ ବିଭିନ୍ନ ସମୟରେ ମୋର ନିଜ ଖୁସି ପାଇଁ ଲେଖାଗୁଡ଼ିକୁ କମ୍ପ୍ୟୁଟର୍‌ରେ ଟାଇପ୍ କରି ଦେଖୁଥିଲି । କୌଣସି ପ୍ରସଙ୍ଗରେ ମୋର ଅନ୍ତରଙ୍ଗ ବନ୍ଧୁ ଏକାଡ଼େମୀ ପୁରସ୍କାର ପ୍ରାପ୍ତ ବିଶିଷ୍ଟ ଲେଖକ ବୈଷ୍ଣବ ଚରଣ ମହାନ୍ତି ଏ ଲେଖା ଦେଖିଲେ, ସେହି ଲେଖାରୁ ମାତ୍ର ଏକଶହ ବାଛିଲେ ଓ ଏହାକୁ ପୁସ୍ତକ ରୂପ ଦେବାପାଇଁ ପ୍ରେରଣା ଦେଲେ । ନାମକରଣ କରି ଛପାଇବାର ବ୍ୟବସ୍ଥା ବି କରାଇ ଦେଲେ । ପୁସ୍ତକର ମଲାଟଠାରୁ ମୁଦ୍ରଣ ପର୍ଯ୍ୟନ୍ତ ସବୁ ଗୌରବ ତାଙ୍କର । ଗଭୀର କୃତଜ୍ଞତା ସହିତ ବୈଷ୍ଣବବାବୁଙ୍କ ପ୍ରେରଣାକୁ ମୁଁ ସ୍ୱୀକାର କରୁଛି । ଏ ପ୍ରିୟ ଲେଖା ଯଦି କାହାକୁ ଅପ୍ରିୟ ଲାଗେ ସେ ଦୋଷ ମୋର ।

[signature]

୧

## ରାବଣ ପୋଡ଼ି

ଦେଶଟାଯାକ ତ ରାବଣରେ ଭରା
ରାମ ଖୋଜିଖୋଜି ଜୀବନଗଲା,
କାହାକୁ ପୋଡ଼ିବ ? କାହାକୁ ଛାଡ଼ିବ ??
ତୁଛାଟାରେ ଖାଲି କରୁଛ ହାଲ୍ଲା ।୦।

'ରାମ' 'ରାମ' କହି ବାପୁଜୀ ଖୋଜିଲେ
ନାଥୁ 'ରାମ' ଚୋଟେ ପଡ଼ିଲେ ଢଳି,
ଦୁନିଆଟାଯାକ ରାବଣ ପୋଡୁଛ
'ରାମ' 'ରାମ' କହି କରୁଛ କଳି !
ଆଜିର ରାବଣ ଦେଶେ ଭରପୂର
ଯିଏ ପୋଡ଼େ ସେ କି' ରାବଣ ନୁହେଁ ?
ରାବଣ ନାଆଁରେ ଚାନ୍ଦା,ବଟି ଆଣି
ଜନତା ଆଗରେ କରୁଛ ପାଲ୍ଲା
କାହାକୁ ପୋଡ଼ିବ (?)କାହାକୁ ଛାଡ଼ିବ(?)
ତୁଛାଟାରେ ଖାଲି କରୁଛ ହାଲ୍ଲା ॥୧॥

ନିଜ ଭଉଣୀର ଅପମାନ ପାଇଁ
ସେ କାଳେ ରାବଣ ହରିଲା ସୀତା,
ଅଶୋକ ବନରେ ମାତାଙ୍କ ଆସନ
ପୁରୁଷ ଗମନ କରିଲା ବାରଣ,
ପୁତ୍ର ରୂପେ ହେଲା ଜଗତ ଜିତା,

ନାରୀ ଅପମାନ ଦେଶସାରା ଆଜି
ନକଲି ବେଶରେ କରୁଛ ପାଲ୍ଲା ?
କାହାକୁ ପୋଡ଼ିବ କାହାକୁ ଛାଡ଼ିବ
ତୁଚ୍ଛାଟାରେ ଖାଲି କରୁଛ ହାଲ୍ଲା।୨।

ପିତୃ ସତ୍ୟପାଇଁ ରାମ ଗଲେ ବନେ
ସୀତାଙ୍କୁ ତେଜିଲେ ଜନତା ପାଇଁ,
ଛାଡ଼ି ବିଭୀଷଣ ଲଢ଼ିଲେ ରାବଣ
ନିଜ ଦେଶ,ନିଜ ଜନତା କାରଣ,
ଜନନୀ ଜନମ ଭୂମିକୁ ଚାହିଁ,
କିଏ ଅବା ବଡ଼ କିଏ ଅବା ସାନ
ନିଜ ମତ ପାଇଁ ନିଜର ଲୀଳା ।୩।
କାହାକୁ ପୋଡ଼ିବ କାହାକୁ ଛାଡ଼ିବ
ତୁଚ୍ଛାଟାରେ ଖାଲି କରୁଛ ହାଲ୍ଲା



## ୨

## ବସନ୍ତ ଆସିଛି ଆଜି କାନ୍ଦେ ଗଛ ଲତା

ବସନ୍ତ ଆସିଛି ଆଜି
କାନ୍ଦେ ଗଛ ଲତା,
ଡାଳ ନାହିଁ ପତ୍ର ନାହିଁ,
କି ଦେବ ବାରତା ।୦।

ଆକାଶର ଜହ୍ନ ଅଛି
ଧୂଆଁ ଉହାଡ଼ରେ
ମଳୟ ଗିରିରେ ନିଆଁ
ହୁତୁ ହୁତୁ ଜଳେ,
ଦକ୍ଷିଣା ପବନ ଆଜି
ଭୁଲେ ଶୀତଳତା ।୧।

କୋକିଳର ସ୍ୱର ଆଉ
ଆଣେନା ଚମକ,
ବିପଣୀରେ ପ୍ରିୟା
ଖୋଜେ ପ୍ରୀତିର ବଣିକ,
ଜୀବନରେ ଯୌବନର
ନାହିଁ ସରସତା ।୨।

ହନ୍ତସନ୍ତ ବସନ୍ତ ଟା
ଦୁଃଖେ ଯାଏ ଲୁଚି,
କବି ଲେଖନୀରେ ଖାଲି
ବସନ୍ତ ରହିଛି,
ଜୀବନରେ ବସନ୍ତ ର
କାହିଁ ମାଦକତା ? ।୩।

◆ ◆ ◆



୩

## ତେଲ ଭେଜାଲକୁ

ତେଲ ଭେଜାଲକୁ ଗେଲ ଭେଜାଲ ଲୋ
ଦୁନିଆ ଭେଜାଲ ହୋଇଲା,
ଭେଜାଲ ଆଜି ବି ଭେଜାଲ ହେଲାଣି
ଖାଣ୍ଟି ଦିନ କଥା ସଇଲା ।୦।

ମନ୍ତ୍ରୀ ଭେଜାଲକୁ ଯନ୍ତ୍ରୀ ଭେଜାଲ ଲୋ
ଭେଜାଲ ହେଲେଣି ହାକିମ
ସୁନା ଭେଜାଲକୁ ଦାନା ଭେଜାଲ ଲୋ
ଚଳିବା ହେଲାଣି ବିଷମ ।
(ପୁଣି)ପୀରତି ଭେଜାଲ କୀରତି ଭେଜାଲ,
ଅସଲି ସପନ ହୋଇଲା ।୧।

ପ୍ରେମ ଭେଜାଲକୁ ପ୍ରେମିକା ଭେଜାଲ,
ଭେଜାଲ ପୀରତି ବଣିକ,
ବଇଦ ଭେଜାଲ ଔଷଧ ଭେଜାଲ
ସବୁଠୁ ଭେଜାଲ ମଣିଷ ।
ପାଠ ଭେଜାଲକୁ ଚାଟ ଭେଜାଲ ଲୋ
ମନ ବି ଅସଲି ନୋହିଲା ।୨।

ଦୁଧ ଭେଜାଲକୁ ମଦ ବି ଭେଜାଲ
ଭେଜାଲ ହେଲାଣି ଚାକିରି,
ଭୋଟ୍ ଭେଜାଲକୁ ନୋଟ୍ ବି ଭେଜାଲ
ଭେଜାଲ ହେଲେଣି ଭିକାରୀ
ନଣନ୍ଦ ଭାଉଜ ପୀରତି ଆଜି ତ
ଯଉତୁକେ ମପା ହୋଇଲା ।୩।





୪

# ମାନିଲାନି ତାର ଚୂର୍ଣ୍ଣ କୁନ୍ତଳ

ହାଟକବରନୀ କଟକ ଯାଉଛି
ବସ୍ ଚଢ଼ି,
ବାଣୀବିହାରର ଫାଟକ ପାଖରୁ
ଧରିଲା ଗାଡ଼ି ।
ସରକାରୀ ଗାଡ଼ି ଝରକାରେ ତାର
ନାହିଁ ତ କାଚ,
ବରଷା ଆସିଲେଭିତରେ ବାହାରେ
ପାଣିର ନାଚ ।

ଯୋଗକୁ ସେଦିନ ବରଷା ନଥିଲା
ବହୁଛି ବାଆ,
ସାଇଁ ସାଇଁ ସାଇଁ ଚାଲିଛି ବସ୍
ସତେକି ନାଆ ।

ଖଟ ଖଟ ଖଟ, ଧଡ଼ ଧଡ଼ ଧଡ଼
ଚାଲିଛି ଗାଡ଼ି,
ଟିକଟ ଟିକଟ ଗାଡ଼ିବାଲା ଉଚ୍ଚେ
ଛାଡୁଛି ରଡ଼ି ।

ବଡ଼ ଅମାନିଆ ରାଜଧାନୀର ସେ
ଖୋଲା ପବନ,
ବହି ଚାଲୁଥିଲେ ମାନେ ନାହିଁ କେବେ
ଥାନ ଅଥାନ ।

କଟକୀ ଛଟକୀ ନାଗରୀର ମୁଖ
ଛୁଇଁବା ଆଶେ,
ବାତୁଳା ପବନ କେଶବାସ ସାଥେ
ମୁହଁରେ ମିଶେ ।

କୁରଙ୍ଗୀନୟନା ମୁକୁଳିତ କେଶ
ମୁହଁରେ ପଡ଼େ,
ବାମ ହାତେ ବାମା କେଶରାଶି ନେଇ
ପଛକୁ ଭିଡ଼େ ।

ଯେତେ ନିବାରିଲେ ମାନିଲାନି ତାର
ଚୂର୍ଣ୍ଣ କୁନ୍ତଳ,
ଚୁମିବା ଲୋଭରେ ବରମ୍ବାର ଛୁଏଁ
ବାମା କପୋଳ ।

ଭୁବନେଶ୍ୱରରୁ କଟକ ବସରେ,
୧-୧୧-୧୯୭୮
(ସେତେବେଳେ ରାସ୍ତା ଓ ବସ୍ ଏହିପରିଥିଲା,ଆଉ ସେ ବେଳର ଗଛ ବହୁଳ,ଖୋଲା ପବନ ଓ ଥଣ୍ଡା ଜୀବନ କଥା ମନେ ପଡ଼େ)

ହାଟକବରନୀ-ସୁନାରଙ୍ଗିନ କନ୍ୟା
କୁରଙ୍ଗୀ ନୟନା-ହରିଣୀ ଆଖିପରି ସୁନ୍ଦର
ଚୂର୍ଣ୍ଣକୁନ୍ତଳ-କପାଳ ଉପରକୁ ପଡ଼ିଥିବା କୁଞ୍ଚିତକେଶଗୁଚ୍ଛ
କପୋଳ- ଗାଲ,ଗଣ୍ଡଦେଶ ।

୫

# ପ୍ରଭୁ ଗଣପତି ଆଣ ଶାନ୍ତି

ଗଣତନ୍ତ୍ରର ଦେବତା ହେ ପ୍ରଭୁ
ଗଣପତି,
ବଣା ହେଉଥିବା ଭାରତବାସୀଙ୍କୁ
ଦିଅ ଗତି ।
ଦେବଦେବ ମହାଦେବଙ୍କ ବାହନ
ବୃଷବର,
ସ୍କନ୍ଧେ ତାଙ୍କର ସଦା ବିରାଜିତ
ନାଗେଶ୍ୱର ।

ମାତା ପାର୍ବତୀ ସିଂହ ବାହନେ
ଅବତରି,
ମୟୁର ବାହନେ କୁମାର ଆସନ୍ତି
ବିଜେକରି ।
ମୂଷିକ ବାହନେ ଆପଣେ ଚଳନ୍ତି
ଗଣେଶ୍ୱର,
ଖାଦ୍ୟ ଖାଦକ ସହାବସ୍ଥାନରେ
ନାହିଁ ଦୂର ।

ଆଛି ଭାରତରେ ମଣିଷ ବେଶରେ
ଅମଣିଷ,
ଗୋଟିକୁ ଦେଖିଲେ ଆରଟି ଫୁଲାଇ
ଉଠେ ନିଶ ।

କିଏ ତ ଧର୍ମରେ କିଏ ତ ଭାଷାରେ
ଭିନ୍ନଭିନ୍ନ,
ମଣିଷଟି ପାଇଁ ମଣିଷ ପାଖରେ
ନାହିଁ ଥାନ ।

ଶିବ ପରିବାର ଚେତନା ଅଶିବେ
ଭୁଲିଯାନ୍ତି,
ପ୍ରଭୁ ଗଣପତି !
ଏଇ ଭାରତରେ ଆଣ ଶାନ୍ତି ॥



## ୬

# ଅମା ଅନ୍ଧାର ଦୂରେ ହଟିବାକୁ . . .

ଅମା ଅନ୍ଧାର ଦୂରେ ହଟିବାକୁ
ଥିଲୁ ଦୀପାବଳୀ ଜାଳି,
ହତାଶ ତମସା ସବୁରି ମନରେ
କାହିଁ ଆଶାର ଦୀପାଳୀ ?

ଆମର ସଂସ୍କୃତି ଅପସଂସ୍କୃତିରେ
ହୋଇଯାଏ ଉବୁଟୁବୁ,
ଦିପାଳୀ ଲିଭାଇ ବାରୁଦ ଧୂଆଁରେ
ଆମେ ହୋଇଯାଉ କାବୁ ।

ଭୁଲିଯାଉ ଆମେ ଆମ ପରମ୍ପରା
ପଶ୍ଚିମ ଦୁଆର ଖୋଲି,
ଅବସାଦ ବେଳେ ଆନନ୍ଦିତ ହେଉ
କରିଦେଇ ଆଖି ନାଲି ।
ବାଟ ଦେଖାଇବ କିଏ ?
ଅମା ଅନ୍ଧାର ସବୁରି ମନରେ
ବୁଢ଼ାଠୁ କିଶୋର ଯାଏ ।



୭

## ବନସ୍ତେ ଡାକୁଛି ଗଜ

ବନସ୍ତେ ଡାକୁଛି ଗଜ,
ବରଷକେ କାହିଁ ଆସୁଛ ରଜ ?
ମୁଁହରେ ନାହିଁକି ଲାଜ !

ବନସ୍ତ ଗଲାଣି କାହିଁ ?
ଗଛ-ଲତା-ବଣ ଆଉ ତ ନାହିଁ
କାଗଜ କଲମେ ରହି ।

ଗାଁ ତ ସହର ହେଲା,
ମଦଭାଟି ଆଜି ଗାଁରେ ମେଲା,
ଲାଗିଅଛି ଭୋଟ୍ ପାଲା ।

ଧରଣୀ ଆଜି ବିରସ
ହସ ଲିଭିଯାଏ ସବୁରି ମୁହଁରୁ
ନିଆଁରେ ଜଳୁଛି ଦେଶ ।

ବନସ୍ତେ ଡାକୁଛ ଗଜ !
ଗଜନାଶ ପାଇଁ ସଜିଏ ସଜ
ଶାସନେ ନାହିଁ କି ଲାଜ ?





# ଫଳିଲା ଗଛ ଫୋପଡ଼ ଖାଏ

ଫଳିଲା ଗଛ ଫୋପଡ଼ ଖାଏ
        କାମିକା ଲୋକ ତୋଖଡ଼ ସହେ,
ଅଫଳନ୍ତି ଗଛ ଠେଙ୍ଗା
        ଅକାମିକା ଯିଏ ଖାଲି ବୁଲୁଥାଏ
        ଟାଣମୁହାଁ ସେ ଲଫଙ୍ଗା ।୦।

ସରକାରୀ ଯାହା ଅଚଳ ତାହା
ଘରୋଇ ମାଲିକ ଦେଖାଏ ରାହା
        ଲାଞ୍ଚ ମୋଡୁଥାଏ ମଙ୍ଗ ,
ବିଭୀଷଣରେ ଏ ଦେଶଟି ଭରା
ପଡ଼ୋଶୀ ପାଇଁକି ପସରା ପୂରା
        ମାଡ଼ଖିଆ ଆମ ଢଙ୍ଗ ।୧।

ମାଡ଼ଖାଇ ଆମେ ବଖାଣୁ ଶାନ୍ତି
ଜଗତେ ଦେଖାଉ ଅନୀତି ନୀତି
        ଭିତର ହେଲାଣି ଫାଙ୍କା
ସତକଥା ଯଦି ବଖାଣି ବସିବୁ
ଅସଲି ହିସାବ ଯଦି ତୁ କସିବୁ
        ହନୁ ଲାଞ୍ଜେ ନିଆଁ,ଲଙ୍କା ।୨।



୯

## ଏ ଘରେ ମାଉସୀ

ଏ ଘରେ ମାଉସୀ   ସେ ଘରେ ମୁଁ ପିଉସୀ,
ଏ ଘରେ ବଉଳ
ସେ ଘରେ ଆମ୍ବକଷି । ।୦।

ଏ ଘରେ ମୁଁ ଓଠ ଧରି ହୁଅଇ ଭଲେଇ,
ସେ ଘରରେ ଲାଞ୍ଜ ଛାଟି ସାଜୁଛି ବିଲେଇ,
ଏ ଘରରେ ବାଘ ସାଜି
ସେ ଘରରେ ପୁଷି ।୧।

ଏ ଘରେ ପ୍ରେମିକ ସାଜେ, ସେ ଘରେ ବାନ୍ଧବ,
ଏ ଘରେ ଶକୁନୀ ସାଜି ସେ ଘରେ କେଶବ,
ଏ ହାତରେ ସୁନାମୁଦି,
ସେ ହାତେ ବାରିସି ।୨।

ଏ ଘରେ ପ୍ରେମିକା ସାଜେ,ସେ ଘରେ ଘରଣୀ,
ସେ ଘରେ ସିଂହ ସାଜି ମୁଁ      ଏ ଘରେ ହରିଣୀ,
ଦୁଇଘରେ  ସାଧୁସାଜି
ତଣ୍ଟିକାଟେ ବସି ।୩।



୧୦

# କ୍ଳାନ୍ତ ପଥିକ କୋଣାରକ

କ୍ଳାନ୍ତ ପଥିକ କୋଣାରକ ଆଜି
ନିରବରେ ଢାଳେ ଲୁହ
ଝାଉଁବଣ ଗୀତେ ବେଦନା ଝରାଏ
ସାଗରେ ବଖାଣେ କୋହ ।୦।

ଲିଭିଛି ସେଦିନ କାଳର ଗରଭେ
ହଜିଛି ସେ କଳାମନ,
ହଜିଛି ଉତ୍କଳ ଉତ୍କର୍ଷ କଳା
ସେ କାଳ ଆଜି ସପନ,
ଚନ୍ଦ୍ରଭାଗାର ସିକତାପୁଳିନେ
ଆଉ କି କାହାଣୀ କହ ?।୧।

ସାଗରେ ଆଉ ତ ଭାସୁନି ବୋଇତ
ସାଧବ ଯାଇଛି ହଜି,
ଭୋକରେ ଓଡ଼ିଆ ଦାନା ଖୋଜୁଖୋଜୁ
ନିଜକୁ ପାରୁନି ଖୋଜି,
ଏ ବେଳରେ କିଏ କଳାକୁ ଖୋଜିବ
କବିତା ଲେଖିବ କୁହ ? (୨)

ଯିଏବା ଲେଖିବ କଳାର କୋଣାର୍କ
ସତକୁ ଦେଇ  କବର,
କବିତାରେ କେତେ ଫୁଲ ଫୁଟାଇବ
ଦେଇ ନକଲି ଅତର
ପ୍ଲାଷ୍ଟିକ୍ ଫୁଲରେ ଲିପିଷ୍ଟିକ୍ ରଙ୍ଗରେ
ବସନ୍ତର ସମାରୋହ ।୩।

ଇତିହାସେ ଖାଲି ରହିଛି ସେଦିନ
କାଳରେ ଲୁଚିଛି କଳା,
କୋଣାର୍କର ସେହି ଯଶ ଗଉରବ
ଶିଳ୍ପୀର ସ୍ନେହ ବୋଳା,
ଚନ୍ଦ୍ରଭାଗାର ଆଖିର କୋଣରେ
ଲହୁରେ ଭିଜିଛି ଲୁହ ।୪।



୧୧

## ହସର ମହକା ଫୁଲଟିଏ

ଜୀବନ ଲତାର ଡାଳ ମେଲି
ତଳେ ଲୋଟିଲାଣି,
ଜୀବନ କଢ଼ିଟି ଫୁଲ ହୋଇ
ଏବେ ଫୁଟିଲାଣି ।

ଲୋଟଣି ଡାଳଟି ତଳେ ଲୋଟି
ଲୋଟି ଯାଏ ମାଡ଼ି,
ଯେ ଫୁଲ ଫୁଟିଲା ମଉଳିବା
ପାଇଁ କେତେ ଡେରି ?

ଅସ୍ତ ସୂର୍ଯ୍ୟ ହସି ହସି
ଘରେ ଫେରିଯାଏ,
ଅସ୍ତ ଜୀବନ ହସରେ
ମହକା ଫୁଲଟିଏ ।

ପୂର୍ଣ୍ଣିମା ଶଶୀ ଉଠେ ହସି;
ରାକା ରଜନୀର ଶାନ୍ତ ସଂଗୀତ
ଆସେ ଭାସି ।

◆ ◆ ◆



୧୨

## ଚାଲୁଣି କହେ ଛୁଞ୍ଚିଲୋ !

ଚାଲୁଣି କହେ ଛୁଞ୍ଚିଲୋ !
ତୁ କେମିତି ରହିଛୁ ବଞ୍ଚିଲୋ ?
ପଛରେ ତୋହର ଏଡ଼େ କଣାଟାଏ
ଲାଜନାହିଁ ପରପଞ୍ଚୀଲୋ ! ।୦।

ଛୁଞ୍ଚି କହେ ଆଲୋ ଗୋଦରୀ ଥରେ ତୁ
ନିଜର ଗୋଡ଼କୁ ଅନା,
ପରକଥା ଖାଲି ବଖାଣି ବସୁଛୁ
ପରଖିଲେ ଜାଣୁ ସିନା,
ଶହଶହ ଫୋଡ଼ ନିଜ ପଛେ,ତେବେ
ନିଜ କଥା ନୋହୁ ପାଞ୍ଚିଲୋ ! ।୧।

ଉତ୍ତରେ ଚାଲୁଣି ବଖାଣି ବସିଲା
ଭାରତର ରାଜନୀତି,
ଯା' ପଛ ପଟରେ ବେଶି ଫୋଡ଼ ଅଛି
ଏଠାରେ ସେ ସେତେ ସତୀ,
ଏଡ଼େ ବିକଳିଆ ଗୋଟାଏ ଫୋଡ଼ରେ
କିପରି ରହିଛୁ ବଞ୍ଚିଲୋ ? ।୨।



୧୩

## ନବୋପନିଷଦ

ଆଲୋ ମିତଣି ଲୋ,
ଅନାହୂତ ପୁର ନାଦ,
ଭରତମୁନୀଙ୍କ ଭାରତରେ ଆଜି
ଚାଲିଛି ପଞ୍ଚମବେଦ ।

ଜାଦୁଆ ବିକୁଛି ଜାଦୁର ମଲମ
ମଦୁଆ ବିକୁଛି ମଦ,
କାଦୁଆ ମାଟିରେ ଗୋଦଡ଼ା ଦଉଡ଼େ
ଗଞ୍ଜୋଡ଼ ପଢୁଛି ବେଦ,
କେତେ ଟସକର ଆଇନ୍ ଗଢ଼ିଲେ
ଖାଇଗଲେ ପଶୁଖାଦ୍ୟ (୧)

ସଂସ୍କୃତି ନାଆଁରେ ଅସଂସ୍କୃତ ଦଳେ
ବଖାଣନ୍ତି ନୀତି କଥା,
ଧର୍ମ ନାଆଁ ନେଲେ ଭ୍ରମରେ ପଡ଼ିବୁ
ପଙ୍କରେ ବୁଡ଼ିବ ମଥା,
ଗଙ୍ଗା ଜଳ ଆଜି ବେଙ୍ଗା ହୋଇଗଲା
ଦେଶେ ପୂଜାପାଏ ମଦ ।(୨)



୧୪

# ରାମରୂପେ ରାମ ଦେବ କରିଲ ଉଦ୍ଧାର

ପାଷାଣୀ ଅହଲ୍ୟା ରୂପେ
ଗଡୁଥିଲି ପଡ଼ିଥିଲି
ପିଢ଼ାରେ, ଭାଡ଼ିରେ,
କେବେ ବା ପଚାରେ କିଏ,
ଅବା କିଏ ଫିଙ୍ଗିଦିଏ
(ଗୋରୁ କୁଣ୍ଡେ) ପୋଖରୀ ଆଡ଼ିରେ ।

ଅନେକ ତପସ୍ୟା ଫଳେ
ନାଥଯୋଗୀ ମାଗେ ଭିକ
କରି ମୋତେ ଥାଳ,
କେବେ ବା ସାପୁଆ କେଳା,
ନାଉତୁମ୍ବୀ ଫୁଙ୍କୁଥାଏ
କରି ସାପ ଖେଳ ।

ପରିବାକୁ ହୀନ ମୁଁ ତ
ଫଳରେ ନୁହେଁ ଗଣା ତ
ଚିକ୍କଣ ମୋ ରୂପ,
ଗରିବଙ୍କ ପ୍ରିୟ ଖାଦ୍ୟ,
ଧନୀଙ୍କୁ ପୂରା ଅଖାଦ୍ୟ
ଫଳ ମୋ ଅମାପ ।

*ଏବେ ଶୁଣ ଆଉ ଏକ କଥା,*

ତ୍ରେତୟା ଯୁଗରେ ରାମ,
ସତ୍ୟଶିବ ଅଭିରାମ
ଯଜ୍ଞ ରକ୍ଷା ପାଇଁ,
ଗୁରୁ ବିଶ୍ୱାମିତ୍ର ସାଥେ,
ଲକ୍ଷ୍ମଣ ଭାଇ ସଙ୍ଗତେ
ଯାଉଥିଲେ ଧାଇଁ ।

ଗୌତମ ଋଷି ଆଶ୍ରମେ,
ପଦଧୂଳି ପାଇ ଭ୍ରମେ
ପାଷାଣୀ ଅହଲ୍ୟା,
ଅଭିଶାପୁ ହେଲା ମୁକ୍ତ,
ଚକିତ ହେଲା ଜଗତ
ଈଶ୍ୱରଙ୍କ ଲୀଳା ।

ଯୋଗବୀର ରାମଦେବ,
ରୋଗ,ଭୋଗ ମନଖେଦ
ଯୋଗ ଶିବିରରେ ,
କରାଇଲେ ଯୋଗାଭ୍ୟାସ,
ଯୋଗର ନାନା ଅଭ୍ୟାସ
ବିବିଧ ପ୍ରକାରେ ।

ବହୁମୂତ୍ର,ରକ୍ତଚାପ,
ବାୟୁ ଦୋଷ, ହୃଦତାପ
କୋଷ୍ଠବଦ୍ଧତାରେ ।
ଅଟେ ଏ ଅମୂଲ୍ୟ ଧନ
ନିଦାନ କୁଳ ରତନ
ଶ୍ରେଷ୍ଠ ଏ ଧରାରେ ।

ତୁଳସୀ ଲବଣ ସେଓ,
ଖାଜର ପୋଦିନା ଲାଉ
ଫେଣ୍ଟା ଫେଣ୍ଟି ରସ
ସକାଳୁ କରିଲେ ଗ୍ରାସ,
ଯିବ ନାନା ଦେହ ତ୍ରାସ
ମନ ବି ସରସ ।

ସେ ଦିନୁ ହେଲି ଉଦ୍ଧାର,
ଡିମାଣ୍ଡ ବଢ଼ିଲା ମୋର
ଗ୍ରାମ ବା ସହରେ,
ସର୍ବେ ହେଲେ **ଲାଉଖିଆ**,
ପୁରୁଣା ଅଥବା ନୂଆ
ବୁଢ଼ା କି ଯୁବାରେ ।

ଲାଉ ଭାଉ ବଢ଼ିଚାଲେ,
ଦଶ ବା ପନ୍ଦର ମୂଲେ
ମିଳୁଛି ବା କାହିଁ ?
ରୋଗରେ ଅବା ଭୋଗରେ,
ଭାଗରେ ବା ଅଭାଗରେ
ଲାଉଗଲେ ପିଇ ।

ରାମ ରୂପେ ରାମଦେବ,
ସାକ୍ଷାତ ତୁମେ ଦଇବ
କରିଲ ଉଦ୍ଧାର,
ଯୋଗୀ,ରୋଗୀ,ଚାଷୀଙ୍କର,
ରାମଦେବଙ୍କୁ ଜୁହାର
କୋଟିଏ ଜୁହାର ॥

◆ ◆ ◆



୧୫

# ଅନାବନା ଘାସଫୁଲ

ଅନାବନା ଘାସଫୁଲ
କେହି ନାହିଁ ଲଗାଏ,
ଆଖିରେ ପଡ଼ିଲେ ତାହା
ପୂର୍ବ ସ୍ମୃତି ଜଗାଏ ।(୦)

ସବୁ ଜୀବନରେ ଥାଏ
ଘଟଣାର ଝଲକ,
ମନରେ ବି ଉଙ୍କିମାରେ
ଅନୁଭବ ପୁଲକ,
କିଏବା ସାଇତେ ତାକୁ
କିଏ ଅବା ହଜାଏ । (୧)

କେବେ ମେଘ, କେବେ ଖରା
କେବେ କୁଆ ପଥର,
ମାଡ଼ ଖାଇ ମୁଣ୍ଡ ଟେକେ
ନାହିଁ କା'ରେ ଖାତର,
ସବୁ ମନେ ଦେଖାଦେଇ
ଭାବନାରେ ଭିଜାଏ । (୨)

ବିଧାତାର ଭିଆଣ ସେ
କାହାପାଇଁ ଅଲୋଡ଼ା
ଗୁଣ ତା'ର କେ ମାପିବ
କାହାପାଇଁ ସେ ଲୋଡ଼ା ?
ତଥାପି କା' ମନ ସ୍ମୃତି
ଯଦି କେବେ ଜଗାଏ ।(୩)

◆◆◆



୧୬

# ଚାଟ ଘର ପୁଅ ଚାଟ

ଚାଟ ଘର ପୁଅ ଚାଟ
ଭାଟ ଘର ପୁଅ ଭାଟ,
ପଢ଼ିଲେ ପାଠ ଦିଶିବ ବାଟ
ଓଲଟି ଯିବ ଲଲାଟ ।୦।
ଚାଟ ଘର ପୁଅ ପାଠ ନ ପଢ଼ିଲେ
ଫାଟରେ ପଶିବ ପାଣି,
ନବରଙ୍ଗ ସବୁ ବେଢଙ୍ଗ ସାଜିବ
ଓଲଟି ପଡ଼ିବ ଠାଣି,
ଚାଟଘର ପୁଅ ଭାଟ ପାଲଟିବ
ଅବାଟରେ ହେବ ଭେଟ ।୧।

ଉଚକୁଳେ ଜାତ ଦଇବର ଲୀଳା
ପୌରୁଷ ନିଜ ଅଧୀନ,
ମଣିଷ ମନର ବିବେକ ଦେଖାଏ
ଆଲୋକିତ କରେ ମନ,
ଅଘାଟରେ ଯିଏ ଘାଟ ଖୋଜୁଥାଏ
ଅବାଟରେ ଖୋଜେ ବାଟ ।୨।
ଚାଟ ଘର ପୁଅ ଚାଟ
ଭାଟ ଘର ପୁଅ ଭାଟ ।

◆ ◆ ◆



## ୧୭

ଗାଁରେ ଗାଁରେ ଶୀତଳ ଷଷ୍ଠି,
ତରୁଣ ଅରୁଣ ହାତରେ ଯଷ୍ଟି,
ଲଙ୍ଗୁଳି ନାଚରେ ଫୁଙ୍ଗୁଳାମାନଙ୍କ
ମନ ଛୁଇଁଲାଣି ଆକାଶ,

ସଦାଶିବ ଆଉ ମାତା ପାର୍ବତୀ
ହତାଶ ମନରେ ଚାହିଁ ଦେଖନ୍ତି,
କିନ୍ନରମାନଙ୍କ ଉଦଣ୍ଡ ନାଚରେ
ଭକତ ମନରେ ବତାସ,

ଦୁନିଆଁରେ ଖାଲି ଭେଳିକି,
ଶେଷ ଅବତାର କେବେ ଦେଖା ଦେବେ ?
କେବେ ଦେଖା ଦେବେ କଳ୍କୀ ?



## ୧୮

ଅଶାନ୍ତ ଏଇ
ଧରଣୀ ବୁକୁରେ
ଶାନ୍ତିର ଗୀତ ଗାଇ

ଅତୃପ୍ତ ଏଇ
ମାନବ ପ୍ରାଣରେ
ତୃପ୍ତିର ଆଶା ନେଇ

ଝରିପଡୁ ବିଭୁ ଆଶିଷ
କାମନା କରୁଛୁ
ନୂତନ ଜୀବନ
ଭରିଦେଉ ପ୍ରାଣେ ହରଷ ।



## ୧୯

ଦିଆ ନିଆ ଥିଲେ
ଅତି ଆପଣାର
କ୍ଷୀରେ ନୀର ଯେହ୍ନେ ମିଶେ,

ଦେଉଥିବା ଯାଏ
ଷୋଳଣା ନିଜର
ପୋକସୁଙ୍ଗା ଭଲ ବାସେ,

ଦୁନିଆଁଟା ସାତପର ।
କାମ ସରିଗଲେ
ଫସର ଫାସର
ହୀରା ପାଲଟେ ଅଙ୍ଗାର ।



## ୨୦

ସେନେହ, ସୋହାଗ,
ପୀରତି ମମତା
ଧରା ସ୍ୱରଗର ଅମୃତ,

ପରସ୍ପର ମଧ୍ୟେ
ବିରାଜିବ ଯେବେ
ଜଗତେ ଆସିବ ବସନ୍ତ,

ଏହା ଯେଉଁଠାରେ ନ ଥିବ
ରାଜା ବାଦଶାହା,
କୁବେର ହେଲେ ବି
ନରକରୁ ତାହା ବଳିବ ।



## ୨୧

ଅଢ଼େଇ ଦିନିଆ
କୁଣିଆ ହୋଇ ତୁ
କେତେ ବା ଦେଖାଉ ବଡ଼େଇ,

ଚାହିଁ ବସିଥିବୁ
ବଲବଲ ହୋଇ
ଉଡ଼ିଯିବ ପ୍ରାଣ ଚଢ଼େଇ,

ଦେଖାଉ ତୁ କେତେ ସମ୍ପତ୍ତି,
ରହିଥିବ ସିଏ,
ଗଲାବେଳେ ତୁ ତ
ନ କରିବ କେବେ ଆପତ୍ତି ।



୨୨

ଏ ଭବ ଦୁନିଆ
ପାଠଶାଳାରେ
ଅଙ୍କାରେ ଲେଖା ନାଆଁ,

ରଖିବାକୁ ହେଲେ,
ଯଶ ଗଉରବ
ସତ୍ୟ ଏକମାତ୍ର ସାହା,

ଆଉ ସବୁ ଯିବ ମିଳାଇ,
ପୀରତି ମମତା
ଉକୁଟି ଉଠିବ
ନିଆଁରେ ସୁନାକୁ ଢଳାଇ ।'



## ୨୩

ଆଜି ଅବା ହେଉ
କାଲି ଅବା ହେଉ
ହେଉ ଅବା ମାସେ ବରଷେ ,

ନିଶ୍ଚୟ ତ ଥରେ
ଭୂମିକା ସରିବ
ଆଗେ ଯିବ,
ପଛେ କିଏ ସେ ,

ଏତିକି ମାତର ସମ୍ମତି,
ହଁ ହଁ ଯିବା ନିଶ୍ଚୟ ଯିବା
ସ୍ମୃତି ଥାଉ ଖାଲି ବରତି ।



## ୨୪

ନାଣ୍ଡି ମୁଣ୍ଡଟାରେ
ଚଉଁରୀ ଖୋସିଲେ
ସେ କି ଘନକେଶୀ ହୋଇବ ?

କପି କରିକରି
ଉପାଧି ପାଇଲେ
କାମକୁ ତାହା କି ପାଇବ ?

ଦୁନିଆକୁ ଖାଲି ଚହଟ,
ନିଶାପାଣି ପିଇ
ବୋବାଳି ଛାଡ଼ିଲେ
ସିଏ କି ପାଇକ କୁହାଟ ?



୨୫

ମଠା, ପାଟଲୁଗା
କାନ୍ଧେ ପକାଇଲେ
ଲୋକ ହୁଏନାହିଁ ଭଦର,

ଖଚ ଚୁଗୁଲିରେ
ହଟହଟା କଲେ
ହୁଏନାହିଁ  ସେ ତ କଦର,

ଭିତର ଗୁଣଟି ଅସଲ,
ପରଖାପରଖି ହେଲା ପରେ ହୁଏ
ଭଲ ଆଉ କିଏ ଭେଜାଲ ।।



## ୨୬

ଛ' ମାସ ଛ' ପକ୍ଷ
ଦାଢ଼ି ଛାଡ଼ି କେହି
ନୀଳକଂଠ ଦାସ ନୋହିବେ,

ନଣ୍ଡା ମୁଣ୍ଡ ହୋଇ
ଗିନି ବାଡ଼େଇଲେ
ଚଇତନ କିବା କହିବେ ?

ଛାଗଳ ବି ଦାଢ଼ି ରଖିଛି
ବିରାଡ଼ି ବାପୁଡ଼ା ବଇଷିମ ହେଲେ
ଦୁନିଆ କି ଆଖି ବୁଜିଛି ?



## ୨୭

ଘୁଷୁଡ଼ିକୁ ଦେଲେ
ପାଚିଲା କଦଳୀ
କୁକୁରକୁ ଦେଲେ ମହୁ,

ଶିଆଳକୁ ଦେଲେ
ଅମୃତ ମଣୋହି,
ମାହାର୍ଦ୍ଧ ପାଇଲେ କାଉ,

ମର୍ଯ୍ୟାଦା କି ଆଉ ଥାଏ
ବାନର ବେକରେ
ମୁକ୍ତାମାଳ ଦେଲେ
ତହିଁ କି ଭାଜନ ସିଏ ?



୨୮

ଅଳପ ଲୋକଟି
କଳପ ପାଇଲେ
କଳପନା ଛୁଏଁ ଆକାଶ,

ଗଣ୍ଡୁଷ ଜଳରେ
ସଫରୀ ନାଚଇ
ଛୋଟର ମୁହଁଟି ବଡାସ,

କୁଳୀନ ନୁହଁଇଁ ଏପରି ,
ଗଭୀର ଜଳରେ
ବଡ଼ମାଛ ଥିଲେ
ପାଣି ଯାଏନାହିଁ ଚହଲି ।



## ୨୯

ସାଧୁ ଦେଉଥିବା
ଉପଦେଶ ସବୁ
ଆଚରଣ କରି ଦେଖାନ୍ତି,

ଅସାଧୁଏ ସବୁ
ଭାଷଣରେ ଖାଲି
ଉପଦେଶ ଦେଇ ଶିଖାନ୍ତି,

କାଳ ହିଁ ଅସଲ ତାଗଡ଼ା,
ପରଖାପରଖି
କରିଦେଇ କହେ
କିଏ ଆମ୍ବ କିଏ ଆମ୍ବଡ଼ା ।



## ୩୦

କଥା ପଦକରେ
ଭାଷଣ ଢାଳିଲେ
ହେବନାହିଁ ସିଏ ପାଠୁଆ,

ନିଜ କ୍ଷେତଟାରେ
ମାଟି ହାଣୁଥିଲେ
କେହି କହିବେନି ବେଠିଆ,

ନିଜ ଘରେ ଯେବେ ଖଟିବୁ,
ନିଜ ଘର ପଛେ
କଷ୍ଟବଟ ଅଛି
ଚେତା ଫେରାଇଲେ ଭେଟିବୁ ।



## ୩୧

ଦିନକୁ ଦିନ ତୁ
କେତେ ବେଶ ହେଉ
ରଙ୍ଗରଙ୍ଗୀ ପ୍ରଜାପତି ଲୋ,

ଏ ଫୁଲରୁ ଯାଉ
ସେ ଫୁଲକୁ ଚାହୁଁ
ସରବେ ତ ତୋର ସାଥୀ ଲୋ,

ଦେଖୁଥା ଦେଖୁଥା ବସି ଲୋ,
ଚାଖୁଚାଖୁ ଯିବ
ଦେଖୁଦେଖୁ ଯିବ
ଆସି ପହଁଚିବ ନିଶିଲୋ ।



# ୩୨

ନେଳିଆ ସାଗର
ତୀରେ ନୀଳାକାଶେ
ନୀଳଚକ୍ରେ ନେତ ଉଡୁଛି,

ପତିତ ପାତକ
ନାଶନ ନିମନ୍ତେ
ପାତକକୁ ଦୂରେ ତଡୁଛି,

ଶ୍ରୀକ୍ଷେତ୍ରେ ତା ଲାଗୁ ହେଉନି,
ଧଣ୍ଡା-ବିକା ପଣ୍ଡା,
ଗଣ୍ଡଗୋଳଯାକ
ଦେଖିବାକୁ ଡର ସହୁନି ।



## ୩୩

ମନ ଫୁଲଟିଏ
ଭାରି ସୁକୁମାର
ଧନରେ ସେ ତୋଳା ଯାଏନି,

ମାନସୀ କେବଳ
ତୋଳିପାରେ ତାକୁ
ଆନେ ସେ ତ ଧରା ଦିଏନି,

ମନ-ମୀନ ଭାରି ଚଞ୍ଚଳ
ମନ-ଜାଲଟିରେ
ମନକୁ ଧରିଲେ
ଭରିଦିଏ ସିଏ ଅଞ୍ଚଳ ।



## ୩୪

ଧନବଳ ନେଇ
ନଦୀ ବାନ୍ଧିପାର
ମନନଦୀ ବାନ୍ଧି ହେବନି,

ଧନ ଜାଲନେଇ
ଜନେ ଛନ୍ଦିପାର
ମନପକ୍ଷୀ ଧରା ଦେବନି,

ମନଜାଲ ଯଦି ପାତିବ,
ମନପକ୍ଷୀ ତେବେ
ବନ୍ଧା ପଡ଼ିଯିବ
ମନନଦୀ ସେତୁ ଜିତିବ ।



## ୩୫

କଳପାଣି ଯଦି
ଆକାଶୁ ଝରିବ
ସେ କି ହେବ ମେଘ ସମାନ,

ମାତା ସମ ଯେତେ
ଆଦର କଲେ କି
ମାତା ହେବ ସମ ଭାଜନ ?

ମଧୁବୋଳା ମା' ବଚନ,
ଯେତେ ଝିଙ୍ଗାସିଲେ
ଯେତେ ଗାଳି ଦେଲେ
ମା' ଗାଳି ପରା ଚନ୍ଦନ ।



## ୩୬

ଚୁପିଚୁପି କଥା
ଅବିଶ୍ୱାସ ଆଣେ
ଝିପିଝିପି ମେଘେ ଖସରା,

ମାପିଚୁପି ଖାଲି
କଥା କହୁଥାଏ
ବାଗଟି ତାହାର ଦୋସରା,

ଖୋଲାମନ ନୁହେଁ ଏପରି,
ଅସରାଏ ଟାଣ
ବରଷା ଛାଡ଼ିଲେ
ଧରଣୀ ଦିଶଇ ଯେପରି ।



## ୩୭

ଦୂର ପରବତ
ସୁନ୍ଦର ଦିଶଇ
ଦୂରବନ୍ଧୁ କଥା ସୁନ୍ଦର,

ଅତୀତ କୀରତି
ଗଉରବ ଆଣେ
ଅତୀତ ସ୍ମୃରତି ମଧୁର,

ନିକଟ ଲାଗଇ ନାସନା,
ନିକଟ ପାହାଡ଼
ଖାଲ ଖମାଭରା
ଗାଁ ଝିଅ ନାକ ଅସନା ।



## ୩୮

ଚମ୍ପା ଫୁଲ ପରି
ଚେହେରା ହେଲେ କି
ଚମ୍ପାର ବାସନା ମିଳିବ ?

ଫମ୍ପା ମାଠିଆର
ଶବଦ ପରାଏ
ଫମ୍ପା ମନଟିକୁ କଳିବ ।

ମନ-ବାସଦିଏ ମହକ,
ଭିତର ଗୁଣରୁ
ଜଣାପଡ଼ିଯାଏ
କିଏ ପିକ, କିଏ ଡାହୁକ ।



୩୯

ଅସଲି ସୁନାକୁ
ପରଖିବା ପାଇଁ
କଷଟି ପଥର ଅସଲ,

ଅସଲ ବନ୍ଧୁକୁ
ନିରିଖିବା ପାଇଁ
ବିପତ୍ତି ବେଳଟି କେବଳ,

ସଭିଏଁ ସୁଖର ସାଥୀଟି,
ସୁଖବେଳେ ମନେ
ଆନନ୍ଦିତ ଯିଏ
ଅସଲ ବାନ୍ଧବ ସେହିଟି ।



## ୪୦

ଶିଶିର ବାରିକୁ
ଠୁଳ କରି କେହି
ଭରିପାରେ ନାହିଁ ସାଗର,

ରଙ୍ଗ ପୋଷାକରେ
ବିମଣ୍ଡିତ ହୋଇ
ହୋଇ ପାରିବନି ନାଗର,

ସବୁ ସେ କାଳିଆ ଭେଳିକି;
ଗିରି ଟେକିବାକୁ
ଗଞ୍ଜୋଡ଼ କହିଲେ
ଦୁନିଆ ମାରିବ ତାଳିକି ।



## ୪୧

ଶୁଖୁଆ ଖଳାକୁ
ଜଗିବା ପାଇଁକି
ଚିଲ ଯଦି ହୁଏ ପ୍ରହରୀ,

ଭରା ନଦୀ ଡଙ୍ଗା
ପାରିକରିବାକୁ
ଛେଳି ଯଦିହୁଏ ନାଉରୀ,

ଫଳାଫଳ ଯାହା ଘଟିବ;
ମାଙ୍କଡ଼ ବାପୁଡା
ବଇଦ ସାଜିଲେ
ଦୁନିଆ ଡେଙ୍ଗୁରା ପିଟିବ ।



## ୪୨

ଖେଳ ମାଷ୍ଟ୍ର ଯଦି
ହୋଇବ ଖଞ୍ଜ
ବାଘ ଜଙ୍ଗଲରେ
ହୋଇବ ସଞ୍ଜ

ଗୀତ ମାଷ୍ଟରର
କଣ୍ଠଟି ଝାଞ୍ଜ
ଭୁଷି ଯାଇଥିବ
ପଛରେ ଲାଞ୍ଜ

କାଠ କିଣିଥିବ
ନ ଥିବ ମଞ୍ଜ
ନାଚବାଲିଟିର
ଅଣ୍ଟା ଅଖଞ୍ଜ
ମେଘୁଆ ସଞ୍ଜ
ବୋଲଇ ମଚ୍ଛିନ୍ଦ୍ର ଏ ଦହଗଞ୍ଜ ।



## ୪୩

ମନଟା ତୁଚ୍ଛା ବେଙ୍ଗଳା,
ବେଶଟା ଅଧା ପାଗଳା,
କେଶ ହୋଇଯିବ ଧଳା,
ମୁହଁ ପଡ଼ିଯିବ କଳା,

ଆଖି ଦେଖାଯିବ ଖୋଳା,
ନାଲି ପଡ଼ିଯିବ ଡୋଳା,
ଅଣ୍ଟା ତ ହେବ ହୁଗୁଳା,
ପକେଟ ହୋଇବ ପୋଲା ।

ବୋଲେ ମଚ୍ଛିନ୍ଦ୍ର
ବୁଝ ବାଇମନ
ଏ ସବୁ ଲକ୍ଷଣ

ମଧ୍ୟବିତ୍ତ ଜନ
ଯେବେ କର
ଘରତୋଳା ।



## ୪୪

ଟାଇଲି ଭଳିଆ
ଫାଇଲି ରହିଛି
ବିନା ଖର୍ଚ୍ଚରେ କି ମିଳିବ ?
କେଉଁ ମୂଳକରୁ
ଦଉଡ଼ି ଆଇଚ
କାମ ନ କରି କି ଚଳିବ ?

ଯାହା ଅଛି
ଦିଅ ଥାଳିରେ,
ତୁମ କାମ ପାଇଁ
ସବୁ ମୁଁ ଭୁଲିଛି
ରାଣ ଦେଇ ଗଳାମାଳିରେ ।



## ୪୫

ବଇଶାଖ ମାସ
ସଞ୍ଜବେଳେ ଦିନେ
ଅଢା ଖାଇଦେଲେ ଭାଙ୍ଗ,
ଆଉ କହିଦେଲେ
ବୁଢ଼ାକାଳେ ଆହେ
ଦେଖ ହୋ ୟାଙ୍କର ରଙ୍ଗ,

ଅଢା ଡାକଦେଲେ ଶୁଣ,
ପିଇଦିଅ ଚଳେ
ମଢା ତା ପାଇବ
ଚଉଦ ଭୁବନ
ଗୀତରେ ଗାଇବ
ତେବେ ଜାଣିବ ତା ଗୁଣ ।



## ୪୬

ନାଲି ଫିତାଟାକୁ
ନେଳି କରିଦେଲେ
ଲାଞ୍ଚ କି ଉଭାନ ହୋଇବ ?

ନାଲି ଟୋପି ରଙ୍ଗ
ବଦଳାଇ ଦେଲେ
ପୋଲିସର ଗଉଁ ନଇଁବ,

ଦେଶ ଶାସନର ରହସ୍ୟ,
ସାରା ରାଇଜକୁ ଚଳୁ କରିଦେଲେ
ଶାସନ ହୋଇଲା ପାଉଁଶ ।



## ୪୭

ଭିକାରୀ ବାପୁଡ଼ା
ନାକରେ ରାଗ,
ବାତାଜୀର୍ଣ୍ଣ ରୋଗୀ
କଳମ ଶାଗ,

ବଢ଼ି ପାରିଥିବ
ମେଘୁଆ ପାଗ,
ମାଂସ ତରକାରି
ନ ପଡ଼େ ରାଗ,

ରସିକା ଶାଳୀଟି
ହେଲେ ଅବାଗ
କାଳୁଆ ପାଗ,
ବୋଲେ ମଛିନ୍ଦ୍ର
ଏ ଆମ୍ଭିଳା ଯୋଗ ।



## ୪୮

ଥୋକାଏ ଅଛନ୍ତି
କଥା ପଦକରେ
ପାଣିରେ ପକାନ୍ତି ସର,

ଆଉ ଥୋକାଏ ତ
କଥା କହିବାକୁ
କଲିଜାଟି ଥର ଥର,

କାହା ମୁହଁ  ଇସିପାତ
ଅସଲ କାମକୁ
ବାହାରିଲା ବେଳେ
ପଛ କାର ସନ୍ନିପାତ



## ୪୯

ମଶା ତଡ଼ିବାକୁ
ବଳ ନାହିଁ ଯା'ର
କହୁଛି ହାତୀକୁ ବାନ୍ଧିବ ,

ଯା' ମୁହଁର ଭାଷା
ଶୁଦ୍ଧ ଟିକେ ନୁହେଁ
ଉଚ୍ଚ ଆସନ ସେ ମଣ୍ଡିବ,

ପ୍ରହରୀ ସାଜିବ ଡାହୁକ,
ନିଜେ ତ ମରିବ
ବଂଶ ବୁଡ଼ାଇବ
ଦୁନିଆରେ ଲେପି କଳଙ୍କ ।



## ୫୦

ଛ' ମାସ ଦରମା
ନ' ପାଉଥା ପଛେ
ବନ୍ଧା ପଡ଼ିଥାଉ ଘଡ଼ି,

ପେଟ୍ରୋଲ ନ ପାଇ
ସ୍କୁଟରଟା ଥୋଇ
ସାଇକେଲେ ଯାଅ ଚଢ଼ି,

କରଚରେ ଥାଅ ବୁଡ଼ି
ସାବିତ୍ରୀ ଆସୁଛି
ଫଳମୂଳ ସାଥେ
ଆଣିଥିବ ପାଟ ଶାଢ଼ୀ ।



## ୫୧

ଦେଶସାରା ଖାଲି
କମିଶନବସେ
ଆଳୁ ଖୋଳୁଥାନ୍ତି ସର୍କାର,

ମହାଦେବ କିନ୍ତୁ
ଉଭା ହେଉଥାନ୍ତି
ବେଶ ଧରି କେତେ ପ୍ରକାର

ଭୋଟ ଆମର ଅସଲ,
ଦେଶଟା ପଛକେ
ବୁଲି ମୁହେଁ ଯାଉ
ନୋଅଟ ଆମର ଦର୍କାର ।



## ୫୨

ଚତୁର ଲୋକଟି
ଆତୁର ହୁଅଇ
ମୂଢ଼ଙ୍କର ସମାଗମରେ,

ମୂଢ଼ ଲୋକ ସଦା
ପ୍ରଫୁଲ୍ଲିତ ଥା'ନ୍ତି
ଅଘଟଣ ପୂର୍ବାଗମରେ

ଅଘଟଣ ଯେବେ ଆସିବ;
ମୂଢ଼ଙ୍କର ଛାତି
ପାଣି ଫାଟିଯିବ
ଚତୁର ଧଇର୍ଯ୍ୟେ ବସିବ ।



## ୫୩

କେଶ କଳା, ନିଶ ଧଳା
ଦାନ୍ତ ସଫା ତୋରା,
କପାଳେ କୁଞ୍ଚିତ ରେଖା
ବୟସର ଭାରା,

ମନଟା ବି ଏବେ ତୋର
ତୁଚ୍ଛା ଇସପାତ
ଶରୀର ସାରା ଖେଞ୍ଚୁଛି
ଅଣଚାଶ ବାତ

ଦଣ୍ଡାୟମାନ ତ ଦଣ୍ଡ
ଥରଥର ହାତ
ତଥାପି ତୁ ଚିନ୍ତା କରୁ
ନାହୁଁ ଜଗନ୍ନାଥ ।



## ୫୪

ସବୁ ଚତୁର ତ
ଧୂର୍ତ୍ତ ନୁହନ୍ତି
ସବୁ ଧୂର୍ତ୍ତ କିନ୍ତୁ ଚତୁର,

ସବୁ ସରଳ ତ
ନିର୍ବୋଧ ନୁହନ୍ତି
ସବୁ ବୋକା କିନ୍ତୁ ସରଳ,

ମାପଚୁପ ବାଟ ଫିଟିଲା;
ଧୂର୍ତ୍ତ ନିର୍ବୋଧ
ବେଉସା କରିଲେ
ବୋକାର କପାଳ ଫାଟିଲା ।



**୫୫**

ଚିନ୍ତା ପାଇଁ ଚିନ୍ତା କରି
ଚିନ୍ତାମଣି ଭୁଲୁ,
ଅଚିନ୍ତା ହୋଇ ତୁ ନିଜ
ସଂସାର ଚାଳିଲୁ ।

ଗନ୍ତାଘର ମେଳାକରି
ହେଲୁ ଧନବନ୍ତ,
ପଙ୍କରେ ପଶିଲୁ ରଙ୍କ
ପରି କରି ଚିତ୍ତ ।

ଶଙ୍କା କରିବା ଥାନରେ
ନିଶଙ୍କେ ରହିଲୁ,
ଜଗତ କରତା ନାମ
ଲବେ ପାସୋରିଲୁ ।



## ୫୬

ବୋକାକୁ ଯଦି କେ
ଭରସା କରିବ
ଲୋକହସା ହେବା ନିଶ୍ଚିତ,

ଆଖିର ଭାଷାକୁ
ଛମା ସେ ବୁଝେନା
ବରଷାରେ ଖୋଜେ ବସନ୍ତ ,

ସଦା ଖୋଜୁଥାଏ ସମ୍ମାନ;
ସମ୍ମାନ ପାଇବା
ସମୟ ଆସିଲେ
ବୋକାଟି ହୁଅଇ ଉଭାନ ।



## ୫୭

ଜ୍ଞାନୀର ମନର ଅନ୍ଦର ମହଲେ
ଛୁଞ୍ଚିଟିଏ ଯାଗା ହୁଏନି,

ମନମୋଟିଆର ମନ ପର୍ବତକୁ
ଲଙ୍ଗଳ ଦଉଡ଼ି ପାଏନି,

ମନେମନେ ହୁଏ ସମ୍ରାଟ;
ମାଛି ଧରିବାକୁ
ଜାଲ ପାତି ବସେ
ମାଛ ପାଇଁ ଛାଡ଼େ କୁହାଟ ।



## ୬୮

ନର୍ବୋଧକୁ ଯେବେ
ଉପଦେଶ ଦେବ
ହେବ ସେ ଓଲଟା କୀଳକ,

ନିର୍ବୋଧକୁ ଯେବେ
ପାଦେ ଖଟାଇବ
ଖଟୁଥିବ କାଳ କାଳକ,

ବୁଦ୍ଧି ଦେବା ତାକୁ ବୋକାମି;
ଉଚିତ ବେଳରେ
ବୁଦ୍ଧି ଦେଇଥିଲେ
ବୋକା ପାଇଁ ତାହା ଅକାମୀ ।



## ୫୯

ଥୋକାଏ ଅଛନ୍ତି
ମୁହଁ ସରୁ କରି
କାନେକାନେ ଖଚ ବୁଣନ୍ତି,

ଆଉ ଥୋକାଏ ତ
ମୁହଁ ତେଢ଼ା କରି
କାନ କୁହା କଥା ଶୁଣନ୍ତି,

ମଛିନ୍ଦ୍ରକୁ ସବୁ ଅଡୁଆ;
କହିବା ଶୁଣିବା କେହି ଭଲ ନୁହେଁ
ଦୁଇଟା ଯାକ ତ ଭଡୁଆ ।



## ୬୦

ଥୋକାଏ ଚତୁର
କାନେକାନେ କହି
କଥାରେ ପକାନ୍ତି ସର,

ଆଉ ଥୋକାଏ ତ
କାନ କଥା ପାଇଁ
ସବୁବେଳେ ଉଜାଗର,

ସମାଜେ ଢାଳନ୍ତି ଗରଳ;
ଚୁପୁଚୁପୁ କଥା
ଛପିଛପି ମନ
ଛଳକା ଆଖିରେ ପରଳ ।



## ୬୧

ଦଇବ ବଳରେ
ମେଣ୍ଢା ବେଳେବେଳେ
ଭେଣ୍ଡା ପରି ଛାଡ଼େ କୁହାଟ,

ଗ୍ରହ ଅବଳକୁ
ଭେଣ୍ଡା ନଇଁଯାଏ
ଷଣ୍ଢା ମୋଡ଼ି ନଇଁ ଯାଏ ତ,

ଦୈବ ବଳ ବଡ଼ ବଳୁଆ;
ଗ୍ରହ ଯୋଗୁଁ
ନଳରାଜା
ଘାସ କାଟେ,
ଲୁହା ହୁଏ, ସୁନା ଥାଳିଆ ।



## ୭୨

ଢମଣା ସାପଟି
ଫଣା ଟେକିଟେକି
ନାଗ ହେବା ପାଇଁ ଭାବୁଛି,

ଫଣା ଟେକୁଟେକୁ
ବଣା ହୋଇଯାଇ
ଲାଞ୍ଜଟାକୁ ପିଟି ଖୋବୁଛି,

ଜାଣି ପାରୁନାହିଁ ନିଜକୁ;
ମରୀଚିକା ଧାର
ପାଣି ସୁଅ ଭାବି
ଡେଇଁ ଟେକୁଅଛି ଲାଞ୍ଜକୁ ।



## ୬୩

ଅଜାଙ୍କ ହାତକୁ
ବଙ୍କୁଲି ବାଡ଼ି
ପାକେଇପାଟିକୁ
ନାଲିଆ ଚୁଡ଼ି

ମେଘୁଆ ପାଗକୁ
ବରା ପକୋଡ଼ି
ହାତେ ସଜତୋଳା
କଷି କାକୁଡ଼ି

ଚୁଡ଼ାକୁ ମୁଢ଼ି
ବୁଢ଼ାକୁ ବୁଢ଼ୀ
ସଜନା ଛୁଇଁକୁ କଖାରୁ ବଡ଼ି ।



## ୭୪

ଅଛନ୍ତି କେତେକ
ପାଗଳା କୁକୁର
କାମୁଡ଼ିବା
ଖାଲି ଜାଣନ୍ତି,

ସେପରି କେତେକ
ମଣିଷ ଅଛନ୍ତି
ନିଜକୁ କୁକୁର ମଣନ୍ତି,
ବେନିଏ ଜାଣନ୍ତି କାମୁଡ଼ା;

ରୋଗରୁ କୁକୁର
କାମୁଡ଼େ ସିନା ଏ
ମୂଲେଇ ବସନ୍ତି ଚାପୁଡ଼ା ।



## ୬୫

କହନ୍ତି ମାଧବ
ଶୁଣହେ ଉଦ୍ଧବ
କଳିକାଳର ଏ ଲକ୍ଷଣ,

ଗଳିପୋଛି ଯିଏ
କାମ କରିଯିବ
ସବୁଥିରେ ସିଏ ସକ୍ଷମ,

ସାଧୁଏ ରହିବେ ଧାଡ଼ିରେ;
ଅସାଧୁ ବାପୁଡ଼ା କାମ ଶେଷକରି
ଘରକୁ ଫେରିବେ ଗାଡ଼ିରେ ।



## ୬୬

ଦୋଷ ଯେତେବେଳେ
କରୁଥାଅ ତୁମେ
ଉପଦେଶ ଲାଗେ ପିତା,

ନେଡ଼ିଗୁଡ଼
କହୁଣିକୁ ବୋହିଗଲେ
ମନେ ପଡ଼େ ପଛ କଥା,

ହାତରେ ଟିକିଏ
ତେଲଥିବା ଯାଏ
କେତେ ସାଙ୍ଗ କେତେ ଭାଇ

ହାତରୁ ତେଲ ତ
ସରିଗଲାପରେ,
ନୁଖୁରା ପଚାରେ କେହି ?
ମନେ ପଶିଯାଏ ଚିନ୍ତା ।



## ୬୭

ସରଗ ସୁନ୍ଦରୀ
ପରି ଅପସରୀ
ଚାହାଣିରେ ନିଏ କିଣି,

ମିଠାମିଠା ବିଷ
ଖୁଆଇ ଦେଇ ସେ
ଚୋଟେଚୋଟେ ଦିଏ ହାଣି,

ସେତେବେଳେ ଯେବେ
ବାରଣ କେ କରେ
ଅସଲ ବଇରି ସେ ତ,

ଛଳିଗଲା ପରେ
ସରିଗଲା ପରେ
ମନେ ପଶିଯାଏ ଚିନ୍ତା,
ଉପଦେଶ ଲାଗେ ପିତା ।



## ୭୮

କିଏ ଆସିଥିଲା
ଲୋଟା କମ୍ବଳକୁ
କାଖରେ ଯାକି,

ନିଳଠା ଓଡ଼ିଆ
ପାଛୋଟି ଆଣିଲା
କରି ଓଳଖି,

ଥୋପ ଖାଇ ଖାଇ
ନିଜକୁ ଭୁଲିଲେ
ଓଡ଼ିଆ ମାଛ,

ବିଚାରିଲେ ନାହିଁ
କେଉଁ କାମ ଆଗ
କିଏ ତ ପଛ,

ଛାଡ଼ିଲା ଘର,
ସବୁ ଦେଇସାରି,
ମାଲିକେ ସାଜିଲେ
କିଣାଚାକର ।



## ୬୯

ମାନୀ ଦୁର୍ଯ୍ୟୋଧନ,
ଦୁର୍ମିଳା ନନ୍ଦନ
ଦୁଃଶାସନ, ଜରାସନ୍ଧ,

ଦୋଷ କଲାବେଳେ
ଭଲ ମଣୁଥିଲେ
ଉପଦେଶ ଲାଗେ ମନ୍ଦ,

ନେଡ଼ିଗୁଡ଼ କହୁଣିକୁ
ବୋହିଗଲା
ଭାଳିହେଲେ ପଛକଥା

ଦୋଷ ଯେତେବେଳେ
କରୁଥାଅ ତୁମେ
ଉପଦେଶ ଲାଗେ ପିତା ।



# ୭୦

ଆମ ମୁଲକରେ
ଭରି ରହିଅଛି
କେତେ ସମ୍ପଦ,

ନିଜମାଟି ହାଣି,
ଗାଆଁ ବିଲେ ବୁଣି
ଖାଇଲେ ଖୁଦ,

ସପନେ ପହଁରି
ଗୋପନେ ଗୋପନେ
ଦାଦନ ଗଲେ,

ଦାନାପାଣି ପାଇଁ
ଦାଦନ ଓଡ଼ିଆ
ହତାଶ ହେଲେ,

ଦାନା ତ ନାହିଁ,
ଥୋପ ଖାଇ ମାଛ
ଜୀବନ ଦେଛିଲା ପରାଏ ହୋଇ ।



## ୭୧

ପ୍ରଭୁ ହେ !
ଏ ଜନମ ପାଇଁ
ଆଉ କିଛି ନାହିଁ ମାଗୁଣି,

ଆର ଜନମରେ
କର ହାକିମର ଘରଣୀ,
ଦେଖାଇବି ମୋର କରଣି,

ହାକିମ ପଛକେ
ଚୁଲିମୁଣ୍ଡେ ଯାଉ
ସାଢିବି ମୁଁ ଦିଗ ବାରେଣି ।



## ୭୨

ଘର ଘର ବୁଲି
ମାଆ ଧାନ କୁଟେ
ପୁଅ ସାଜୁଅଛି ନାଗର,

ବାସି ତୋରାଣିକୁ
ବୋହୂ ବି ନ ଦିଏ
ମାଆ ଢାଳୁଅଛି ଢାଗର,

ଅଖାଇ ପାଇଛି ଇଲିଶି,
ଖାଇଛି ବୋଲି ସେ
ବାଇଦ ବଜାଇ
କଣ୍ଡାମଣ୍ଡା କରି ଗିଳୁଛି ।



## ୭୩

ଏଇ ମନ ଯଦି
ହସି ଉଠୁଥାଏ
ହସି ଉଠେ ସାରା ଦୁନିଆ

ଏଇ ମନ ଯଦି
ଖୁସି ରହିପାରେ
ବେଦନା ହୁଅଇ ଛାନିଆଁ,

ମନ ଫୁଲ ତେବେ ବାସଇ;
ମନେ ଯଦି ଥରେ
ନିଆଁ ଲାଗିଯାଏ
ସାରା ଦୁନିଆଟା ନାଶଇ ।



## ୭୫

ଅତି ଭକ୍ତି ସିନା
ଚୋରର ଲକ୍ଷଣ
ଅତି ପ୍ରୀତି କଲେ ମନ୍ଦ,

ଅତି ସ୍ନେହ କଲେ
ଡାହାଣୀ କହିବେ
ଅତି ଭାବ ଆଣେ ଦ୍ୱନ୍ଦ୍ୱ,

କଳି ଯୁଗର ଏ ରୀତି;
ଅତି ସାଧୁପଣ
ଲୋକଙ୍କୁ ନ ରୁଚେ
ସତିଆର ଯାଏ ଛାତି ।



## ୭୫

ପରଜାପତି ସମ
ଉଡ଼ି ମୁଁ ବୁଲୁଥିବି
ବିନ୍ଧିବି ମହୁମାଛି ସମାନ,

ଶୁକର ସମ ମୋର
ଭୋଜନେ ନିର୍ବିକାର
ମୀନ ସମାନ ଜଳ ସେବନ,

ଜୀବନ ବିତାଇବି
ବାଦଶାହାଙ୍କ ପରି
ଶ୍ୱାନ ସମାନ ଯେବେ ମରିବି,

ମାୟାକୁ ଦେବି କାଟି
ଆନନ୍ଦ ଦେବି ବାଣ୍ଟି
ଜୀବନ ଯଉବନେ ଭରିବି ।



## ୨୬

ଆହେ ଠାକୁରେ !
କରୁଣା କରନ୍ତୁ ମୋ ଠାରେ

ପିମ୍ପୁଡ଼ି ସମାନ
ଯାତ୍ରୀ ଯଦି ହେବେ
ବସ୍‌ରେ ଠେସି ନିଅନ୍ତି,

ଡ୍ରେନ୍‌ପାଣି ଯଦି
ଡିଜେଲ୍ ହୁଅନ୍ତା
ଗାଡ଼ିରେ ପକାଇ ଦିଅନ୍ତି,

ଡର ଭୟ ଅବା କାହାକୁ,
ଆର୍.ଟି.ଓ. ଅଫିସ୍
ପକେଟରେ ଅଛି,
ମନ୍ତ୍ରୀରୂପୀ ଚଉବାହାକୁ ।।



## ୭୭

ମନରେ ମଇଳା
ଷାଠିଏ ମହଣ
ଦେହକୁ କରୁଛୁ ସଫା,

ଭିତରଟା ତୋର
ପଚିଷଢ଼ିଯାଏ
ଉପର ଦିଶୁଛି ତୋଫା,

ଦେଖିପାରୁନାହୁଁ ନିଜକୁ,
ଦୁନିଆଟା ବୁଲି
ଉପଦେଶ ଦେଉ
ଚିହ୍ନୁନି ଅସଲ ଚିଜକୁ ।



## ୨୮

ଛିଭି ଲାଳସାରୁ
ହାତ ମଇଳାରୁ
ଖୋଲା ଖାଦ୍ୟ ରାସ୍ତାକଡ଼େ,

ଆପଣା ଦୋଷରୁ
ନାନା ରୋଗହୁଏ
ସାବଧାନ !
ଧୂଳି ନହେଁ,ରୋଗ ଉଡ଼େ ।



## ୭୯

ଅସ୍ନେହୀ ମନକୁ
ପିଲାଙ୍କ କାନ୍ଦଣା
ଲାଗେ ଯେହ୍ନେ ଚିରେଇତା,

ସ୍ନେହୀ ମନ ପାଇଁ
ସେହି କାନ୍ଦଣାଟି
ଯଥା ଭାଗବତ, ଗୀତା,

ଯାହାକୁ ସୁନ୍ଦର ଯାହା,
ଗରମ ମନକୁ ନରମ କଥାଟି
ତେଢ଼ାକୁ ପାଞ୍ଚଣ ଲୁହା ।



୮୦

ଡେରିରେ ଯେବେ କେ
ବାହାହୋଇ ଥାଏ
ମେରିରେ ବାନ୍ଧଇ କନିଆ,

ନାରୀ ଅଭିମାନେ
ଥରଥର ଛାତି
ପୁରୁଷ ହୁଅଇ ଛାନିଆ।

ବୟସ ଗଡ଼େଇ
ପୁରୁଷଟି ହୁଏ ବିକଳ,
ବୟସ ଗଡ଼ିଲେ
ଫାଟିଯାଏ ନାରୀ କପାଳ,

ଯଉବନ ଗଲେ ଉତୁରି,
ପାକଳ ବୟସେ
ବାହାହୁଅ ଯଦି
ପିଲାପିଲି ହେବେ ଭଗାରି ।।



## ୮୧

ମାଆଙ୍କୁ(?) ଦେଖିଲେ
ମଣିଷ ଡରନ୍ତି,
ମାଆ ଡରୁଛନ୍ତି ଭୂତକୁ,

ଭୂତ ଯେବେ କେବେ
ମାଆଙ୍କୁ ଦେଖିବ
ଭୟେ ପଳାଇବ ଗାତକୁ,

(ସେ) ଦେଖିନି
ଅସଲ ରୂପକୁ,
ସାରା ବିଭାଗ ଯା
ଇଙ୍ଗିତରେ ନାଚେ
ଜାଣିନି କେତେ ତା' ମାପକୁ ।।



## ୮୨

ଭଲା ରାଜନୀତି
ଚାଲିଛି ଏଠି,
କିଏ ଖଟି ମରେ,
ତା କାମ ବେଠି,

ଶୂନ୍ୟରେ ବଇଁଶୀ
ବଜାଏ କିଏ,
ସାଧୁ-ସାଧୁ ବାଣୀ
ନିଇତି ପାଏ,

ଟହଲ ଟାକର
କିଏ ବା ହୁଏ,
ବିନା ଖଟଣିରେ
ପାଉଣା ପାଏ,

ଗାଉଣା ଗାଏ,
ନଟବର ନାଚ ଦେଖାଉ ଥାଏ ।



## ୮୩

ପାଠ ପାଇଁ ଯେଉଁ
ଭାଟ ରହିଛନ୍ତି
ମଠଟିଏ ଧରି ବସନ୍ତି,

ଚାଟଯାକ ସବୁ
ଥାଟ ବନ୍ଧାହୋଇ
ଛଟପଟ ହୋଇ ଆସନ୍ତି,

ବଟି ଆଦାୟଟି ଅସଲ;
ଯେଉଁ ଭାଟ ଯେତେ
ବଟି ହାଙ୍କି ପାରେ
ତାର ଭରିଯାଏ ଫସଲ ।



## ୮୪

ମିଛମାୟା ଏହି
ଭବ ବିପଣିରେ
କାହିଁକି ଲଗାଉ ମମତା,

ସଉଦା ସାରିଲେ
ନିଜବାଟେ ଯିବା
ପ୍ରୀତି ହେବ ଖାଲି ସାଇତା ।

ରଙ୍ଗ ଭଲଥିଲେ
ବେଶ ଭଲଥିଲେ
ଗହକିର ହେବ ଆଦର,

ଭିତର ଗୁଣକୁ
ଚିହ୍ନିବ ବା କିଏ ?
ଚକଚକିଆ ଏ ସଂସାର ।

ଯିଏ ତାକୁ ଚିହ୍ନି ପାରିବ ।
କଦମ୍ବମୂଳିଆ ଗୋବରଧନିଆଁ
ତା ନିଜର ସିନା ହୋଇବ ।



## ୮୫

ଟିକି ଚାବିଟିରେ
ବିରାଟ ତାଲାର
ମୁଖ ଯେଉଁପରି ଖୋଲେ,

ସରଳ ସରଳ
ଅଳପ କଥାରେ
ଚେତନାର ସ୍ୱର ମେଲେ ।

ତୁମର ସରଳ
ମଧୁର ହସରେ
ସବୁ ଦୁଃଖ ଯାଏ ଭାଜି,

ହୃଦୟର ସବୁ
ଅକୁହା ବେଦନା
କେଣେ ଯାଉଥାଏ ହଜି,

ହସ ବନ୍ଧୁ,ଥରେ ହସ;
ଜୀବନ ପଥରେ
ଯେତେ ଶିଳାପଥ
ପାଲଟିବ ଦୁବ ଘାସ ।



୮୬

ପ୍ରିୟା ନାମ, ମାତ୍ର
ପ୍ରିୟକଥା କହେ ନାହିଁ
ନାମ ତା' ମାନସୀ,
ମନ ମୋହି ପାରେ ନାହିଁ,

ରୂପ ତ ଚିକ୍କଣ,
ପୁଣି ବେଶ ତ ଚିକ୍କଣ,
ମନ ଭିତରଟା ତୁଛା
ଦୁଧ ଓ ଲବଣ

ଇଏ କି ଜୀବନ ?
ମେଘ, ବତାସ ରାତିକୁ
ପୂନେଇର ଜହ୍ନ ।



## ୮୭

ମନ ଜାଣି ହୁଏ ନାହିଁ
ଉପର ହସରୁ,
ଧନ ଜାଣିହୁଏ ନାହିଁ
ପିନ୍ଧିଲା ବାସରୁ,

ଜ୍ଞାନ ଜାଣି ହୁଏନାହିଁ
ଉଚ୍ଚ ଭାଷଣରେ,
ପୀରତି ହୁଏନା ଜାଣି
ଚିକ୍କଣ କଥାରେ

ଦେଖିଲେ ଭିତର,
ଉପର ଚମକ ଯାହା
ଭିତର ଇତର ।



୮୮

ସବୁ ଉଚ୍ଚାଉଚ୍ଚା ଥାନ
ନୁହେଁ ପରବତ,
ସବୁ ରଙ୍ଗରଙ୍ଗି ପାଣି
ନୁହେଁ ସରବତ,

ସବୁ ଭେଣ୍ଡା ଯୁବକ ଲୋ।
ରସିକ ନୁହନ୍ତି,
ସବୁ ନାରୀ ଦୁନିଆଁରେ
ନୁହେଁ ଯଶୋବନ୍ତୀ,

ଭିତର ଅସଲ,
ଉପରୁ ନାଲିଆ
ଦେଖ ମହାକାଳ ଫଳ ।



୮୯

କାନ ଶୁଣାକଥା
ମନକୁ ଫଟାଏ
ବନ୍ଧୁତାରେ ହୁଏ ଫାଟ,

ଧନ ଦିଆନିଆ
ଜବାବ ଭାଙ୍ଗିଲେ
ଶତ୍ରୁସଙ୍ଗେ ଯଥା ଭେଟ,

ବିଶ୍ୱାସ ହିଁ ସବୁ ମୂଳ;
ବିଶ୍ୱାସ ସେତୁରେ
ଥରେ ଫାଟ ହେଲେ
ପ୍ରୀତି ମହାକାଳ ଫଳ ।



## ୯୦

ମାନସୀ ହେବାକୁ ଆସେ
ମନ ବୁଝେ ନାହିଁ,
ପ୍ରୀୟମ୍ବଦା,ମାତ୍ର,
ପ୍ରିୟ କଥା କହେ ନାହିଁ,

ମନ ଦିଆନିଆ କଥା
ସେ ଅତି ଗଭୀର,
ଥରେ ଦେଇଥିଲେ ମନ
କେ କରେ ଅନ୍ତର ?

ମନ ଅଠାକାଠି,
ଏ ସବୁ ତ ବୁଝାବୁଝି
କାରବାରଟି ।



## ୯୧

ପାକଲାବାଳରେ
ରଙ୍ଗ ବୋଳିଦେଲେ
ବୟସ କି ଆଉ କମିବ ?

ଫଟା କାନ୍ଥ ଘରେ
କାଦୁଅ ନେସିଲେ
ଚମକ କି ତାର ଜମିବ ?

ଲୋକଦେଖାଣିଆ ଭେଳିକି;
ଦେଶଟାକୁ ଗିଳି
ଭାଷଣ ମାରିଲେ
ଦୁନିଆଁ ମାରିବ ତାଳିକି ।



# ୯୨

ସବୁବେଳେ ମନଲାଖି
ଦରବ ତ ମିଳେ ନାହିଁ,
ମନ ମତୁଆଲା ଘୋଡ଼ା
ମନ ତ ଦୁହାଁଳ ଗାଈ ।

କାହା ମନ ଚାହେନାହିଁ
ହସିଖେଳି ବୁଲିବାକୁ,
ସପନ ସାଗରେ ଭାସି
ନନ୍ଦନେ ଖେଳିବାକୁ ?

ମନ ଯାହା ଚାହୁଥାଏ
ସବୁବେଳେ ମିଳେ ନାହିଁ ।
ମନ ମତୁଆଲା ଘୋଡ଼ା
ମନ ତ ଦୁହାଁଳ ଗାଈ ।



## ୯୩

ମାନବ ଆଛି
ତାଣ୍ଡବ ରଚେ
ମାନବିକତାର ବୁକୁରେ,

ହିଂସ୍ରତାର ସେ
ଡିଣ୍ଡିମ ପିଟି
ଦେଖେ ଅହମିକା ମୁକୁରେ,

ଅଶାନ୍ତ ଆଛି ଧରଣୀ,
ଆହେ ନୂଆକାଳ
ତବ ଦୃଷ୍ଟି ଢାଳି
ଦେଖା ତାକୁ ନବ ସରଣୀ ।



## ୯୪

ଝୁମୁରୁ ଝୁମୁର
ନୂପୁର ବଜାଇ
ବେଙ୍ଗୁଲି ଅଇଲା ପଶି
ବେଙ୍ଗ ପଚାରିଲା--
'ହଇ ହୋ ମାଡ଼ାମ୍ ।
ଆଜି କାହିଁଭାରି ଖୁସି ?

ଡାହାଣ ହାତରେ
ରଙ୍ଗିନ ଛବିଟା
ବାମ ହାତେ ତା'ର ଖୋଳ ।
ଭୋଜିଭାତ କା'ର ନିମତା ପାଇଛ ?

ବହି ପଢୁଛି କି ଲାଳ ?'
'-ଆରେ -
ନାହିଁ ନାହିଁ ନାହିଁ ନାହିଁ,
ନୂଆ ବରଷର
ଗ୍ରୀଟିଂ ଆସିଛି
ମଙ୍ଗଳ ବାରତା ନେଇ'।



## ୯୫

ମାଆ ଯଶୋବନ୍ତୀ
ଲହୁଣି ଖୁଆଇ
କାହ୍ନାକୁ କରନ୍ତି ଶାସନ

ଏକାଳର ମାଆ
ମନ ଲହୁଣିରେ
ପିଲାଙ୍କୁ କରନ୍ତି ଚିକ୍କଣ

ଅପାଠୋଇ ମାଆ କାହାଣୀ
ସେନହରେ ଅନ୍ଧ,
ଜ୍ଞାନ ଚାଷ ଛାଡ଼ି
ଅବାଟେ ଠେଲାନ୍ତି ତରଣୀ ।



୯୬

ମନଟା ଫୁଲ ପାଖୁଡ଼ା
ଲବଣି ପରି କୋମଳ,
ଏଇମନ ଭଲ ଥିଲେ
ଫୁଟେ ପ୍ରୀତି ଶତଦଳ,

ମନେ ଲାଗିଗଲେ ନିଆଁ
ପ୍ରୀତି ନଦୀ ହଳାହଳ
ପାରିଜାତ ପରି ମନ
ଲାଗେ ଫଳ ମହାକାଳ ।



୯୭

ସମୟର ପକ୍ଷୀଛଟା
ରାବଣକୁ  ସ୍ୱାଗତିକା ଦିଏ
ସୁନାର ହରିଣ ଯାଏ
କଳ୍ପନାର  ଚୋରାବାଲି ଲଘି,
ଆଶାର ପ୍ରଦୀପୁ ଯେବେ
ଭରଷାର ତୈଳ ସରିଯାଏ ।

ସେ ଭାବନା ଏ ଚେତନା
ଅତୀତକୁ ଯାଉ
ନୂତନ ସୂରୁଯ ଆସୁ ହସ୍ତେଧରି
ଆଶାର ଚାଙ୍ଗୁଡ଼ି ଭରି ପ୍ରୀତିର ପାଖୁଡ଼ା

ସୋରିଷ ଫୁଲରେ ହସୁ
କୋକିଳର ଭରା କୁହୁତାନ
ପ୍ରାଣେ ପ୍ରାଣେ ଭରି ଉଠୁ
ବସନ୍ତର ପୂର୍ଣ୍ଣ ପ୍ରତିଦାନ ।



୯୮

**ବ୍ୟକ୍ତି ସ୍ୱାଧୀନତା,ଅନୁଚିନ୍ତା**

କେହି ରାଜକର୍ମଚାରୀ
ଭରିବ୍ୟଥା ମନେ ମନେ
ବଖାଣିଲେ ଅନ୍ତର ବେଦନା
'ଦେଶଟା ତ ରସାତଳେ ଯାଏ
ସ୍ୱାଧୀନତା,ସ୍ୱାଧୀନତା କହି କହି
କଟା ଘା'ରେ ଲୁଣ ଛଟାଯାଏ ।'

ଆଶ୍ୱାସନା ଦେଇ ତାଙ୍କୁ କହିଲି ମୁଁ
-ଏଇ କେତେ ବର୍ଷଟାରେ ଏମିତି ଅଥୟ
ଧର ଧୈର୍ଯ୍ୟ ନ ହୁଅ ବିଷର୍ଣ୍ଣ--
ଉତ୍ତରେ କହିଲେ ଭାଇ
ତୁମେ ଯାହା କହୁଅଛ । ଏ କଥାତ
ଗୋଟାପଣେ ନେତାର ଲକ୍ଷଣ ।
''ଶୁଣ ତେବେ ମୋର ମନକଥା
ଏ ଭାରତେ ବସବାସ କରି
ଏ ସଂସାର ଲାଗିଲାଣି ପିତା
ସକାଳୁ ସକାଳ ଯାଏ
ସବୁବେଳେ
ଚିନ୍ତା ଆଉ ଚିନ୍ତା

ବିଶ୍ୱାସର ନିର୍ବାସନ,
ଅବିଶ୍ୱାସ କରୁଛି ରାଜୁତି
ଚାରିଆଡ଼େ ହା ହା କାର
ବିବେକର ଅହରହ ରାତି ।

ନେଇଆଣି ଥୋଇଦେଲେ
ଚୋରୀ ବିଦ୍ୟା ସବୁଠାରୁ ଭଲ
କହି ପୋଛି ଜାଣିଥିଲେ
ଠକ ଭଲେ ଜିଣିପାରେ ଗଡ଼
ଦିନରେ ତାରା ବି ଦିଶେ
ରାତିରେ ବି ସୁରୁଯ ହସଇ
ଅଳସୁଆ ଗିରି ଲଘିପାରେ
ପୋକସୁଙ୍ଘା ମହକି ବାସଇ

ତେଣୁ,
ଏ ସଂସାର ଲାଗିଲାଣି ପିତା
କାମ କଲେ ଯମ ଆସେ
ଡମ କଲେ ଶିରୋପା ସାଇତା
ଯାହା ଇଛା କରିପାର
ଅନୁଶୋଚନାକୁ ତଡ଼ିଦିଅ
ଅଙ୍ଗାର ବି  ହୀରା ହେବ
କୁକ୍କୁର ବି ପାଲଟିବ ଦିଅଁ ।''



## ୯୯

ହ ରିବୋଲ ଭାଇ ଗୋବିନ୍ଦ ବୋଲ,
***ଭାସିବ ପଥର ବୁଡ଼ିବ ସୋଲ ,***
ଚିଲମେ ଗଞ୍ଜେଇ ସେବନ କରିଲେ
ଚଉଦ ଭୁବନ ଆକାଶେ ବୁଲ ।୧।
ଦେବଦେବଦେବେ ଆଶିଷ ଢାଳି,
ନୂଆନୂଆ ସାଥୀ ମାରିବେ ତାଳି
ଫ୍ରି ଗିଫ୍ଟ୍‌ସଙ୍ଗେ କ୍ୟାନ୍‌ସର ମିଳିବ
ପରିବାରରେ ପଡ଼ିବ ବୋବାଳି ।

ଯେବେ ପିଉଥିବ ବିଦେଶୀ ମଦ,
ଦେଶି ବିଦେଶୀରେ ନ ଥାଏ ଭେଦ !
ସକଳ ସମ୍ପତ୍ତି ଦାନ କରିଦେବ
କାଚ ଚୁଡ଼ି ହେବ ପତ୍ନୀ ସଂପଦ ।
ସେ ସଂପଦ ପୁଣି ରହିବ ନାହିଁ
କ୍ୟାନ୍‌ସର ରୋଗରେ ତୁମେ ଯେବେ ଯିବ
ସେ ଦି ପଟ ନେବେ ଯମ ଡରାଇ ।

ନିଶା ଖାଇଦେଲେ ଏତିକି ଲାଭ
ରୋଗ ଫ୍ରି ଗିଫଟ୍ ଭାରି ସୁଲଭ
ସାଙ୍ଗ ସାଥି ସବୁ ଫ୍ରି ମିଳିଯିବେ
ଫ୍ରିରେ ଗାଳି ଓ ଫ୍ରିରେ ଖାଦ୍ୟ ।
ଚାକିରୀ ବାକିରୀ ଫ୍ରିରେ ଯିବ
ରାସ୍ତାକଡ଼ ଶେଯ ଫ୍ରି ମିଳିବ
ମୁହଁରେ କୁକୁର ଦେବେ ଔଷଧ ।

ହରିବୋଲ ଭାଇ ଗୋବିନ୍ଦ ବୋଲ
***ପଥର ବୁଡ଼ିବ ଭାସିବ ସୋଲ ।***

◆ ◆ ◆



୧୦୦

## ଏବଂ ଶେଷରେ ...

### ପତୁରାନନ୍ଦ ଉବାଚ

ଆନନ୍ଦ କରି ବିତରଣ ।
ପତୁରାନନ୍ଦ ହେଲୁ ଜାଣ ।।
ଦରିଦ୍ର, ନିର୍ଧନ, ପତୁର, ।
ଭାଷାକୋଷରେ ଏ ବିଚାର ।।

ପ୍ରଥମ ଜନ୍ମ ବହ୍ନାଦାସ ।
କଳସା ଚଉତିଶା ପ୍ରକାଶ ।।
ଦ୍ୱିତୀୟେ ବ୍ରଜନାଥ ଜାଣ ।
ବଡ଼ଜେନା ନାମେ ପ୍ରମାଣ ।।

ତୃତୀୟେ ହେଲୁ ଯଦୁମଣି ।
ହାସ୍ୟରସର ଯେହୁ ମୁଣି ।।
ଏ ଜନ୍ମେ ମିଶ୍ର ପରିବାରେ ।
ଜନ୍ମିଲୁ କର୍କଟ ନଗରେ ।।

ସାହିତ୍ୟେ ଲାଗୁଥିଲା ବାନ୍ତି ।
ସାଥୀ ମୋ ଶ୍ରୀଜୟୀ ମହାନ୍ତି ।।
ନାକଟା ଚିତ୍ରକର କରି ।
ଔଷଧ ଦେଲା ମୁଖେଭରି ।।

ସାହିତ୍ୟେ ନାନା ଚାଷ କଲୁ ।
ବେଉଷଣ ବି ଭିଆଇଲୁ ।।
ତାପରେ କଲୁ ବଛାବଛି ।।
ହେରେସା ପଣ ନେଲୁବାଛି ।।

ଚାଳିଶ ଗ୍ରନ୍ଥ କଲୁଜାତ ।
ଶେଷେ ସାହି ମହାଭାରତ ।।
ନିଜ ଜୀବନ ତଥ୍ୟ ଭଣି ।
ମୋ ଫୁଟା ଡଙ୍ଗାର କାହାଣୀ ।।

ଏମନ୍ତ ହେଲୁ ଚାରିଜନ୍ମ ।
ସାଧୁ ହେ ସାବଧାରେ ଶୁଣ ।।
ଆବର ଜନ୍ମ ଥାନ୍ତୁ ହୋଇ ।
ଦେଖିଲୁ ଆଉ କୋଟା ନାହିଁ ।।

ଏଠାରୁ ଜନ୍ମ ହେଲା ଶେଷ ।
ସ୍ୱର୍ଗେ ଚଳିବୁ **ଢାଉବାସ** ।।
ଗୁରୁଙ୍କ ଠାରୁ ଆଜ୍ଞା ପାଇ ।
ମଛିନ୍ଦ୍ର ପଦ୍ୟରେ ଭଣଇ ।।

ସକଳେ ଦିଅ ହରିବୋଲ ।
ଭାସୁ ପଥର ବୁଡୁ ସୋଲ ।।

◆◆◆



ଶାନ୍ତିନିକେତନର ଶିକ୍ଷା ଓ ସଂସ୍କାରକୁ ଉପଜୀବ୍ୟ କରି ଅଧ୍ୟାପନାକୁ ବୃତ୍ତି କରିଥିବା ଡକ୍ଟର ଶ୍ରୀଚରଣ ମହାନ୍ତି କିନ୍ତୁ ପବୃତ୍ତିରେ ଜଣେ ସାହିତ୍ୟ ସାଧକ । ସାରସତ ଜଗତରେ ତାଙ୍କର ପରିଚିତିର ପରିସୀମା କବିତା, ଗଳ୍ପ, ପ୍ରବନ୍ଧ, ରମ୍ୟରଚନା, ନାଟକ, ଶିଶୁ ସାହିତ୍ୟ, ଗୀତିକବିତାଠୁ ଆରମ୍ଭକରି ସାହିତ୍ୟସମାଲୋଚନା ପର୍ଯ୍ୟନ୍ତ ପରିବ୍ୟାପ୍ତ । ଜଣେ ନିଷ୍ଠାପର ଗବେଷକ, ସମ୍ପାଦକ ତଥା ସାହିତ୍ୟ ସଂଗଠକ ଭାବେ ତାଙ୍କର ସୁଖ୍ୟାତି ରହିଛି ।

ଡକ୍ଟର ମହାନ୍ତିଙ୍କ ଜନ୍ମ ୧୯୫୩ ମସିହା ଡିସେମ୍ବର ୬ତାରିଖରେ କେନ୍ଦ୍ରାପଡ଼ା ପାଟକୁରାର ଗଜପୀଠ ଗ୍ରାମରେ; ତାଙ୍କ ମାତା ଶ୍ରୀମତୀ ଗଜି ଦେବୀ ଏବଂ ପିତା ଶ୍ରୀ ପରିକ୍ଷିତ ମହାନ୍ତି । ବର୍ତ୍ତମାନର ବାସସ୍ଥାନ ଭୁବନେଶ୍ୱର ରସୁଲଗଡ଼ର ୮୮୬,ଚଣ୍ଡୀମାତା କଲୋନୀ ।

